ଓଡ଼ିଶା ଶିକ୍ଷାବିଭାଗ ଡିରେକ୍‌ଟର ମହୋଦୟଙ୍କ ୮।୯।୫୧ ତାରିଖର ନୋଟି-
ଫିକେସନ୍ ଅନୁଯାୟୀ ଲିଖିତ ଏବଂ ୧୦।୪।୫୨ ତାରିଖର ୧ ନମ୍ବର
ନୋଟିଫିକେସନ୍‌ରେ ପ୍ରଥମ ଶ୍ରେଣୀର ଦ୍ୱିତୀୟାର୍ଦ୍ଧ ପାଇଁ ଅନୁମୋଦିତ

---

# ପାଠ ପରାଗ

## ପ୍ରଥମ ଭାଗ–୨ୟ ଖଣ୍ଡ

(ପ୍ରଥମ ଶ୍ରେଣୀର ଦ୍ୱିତୀୟାର୍ଦ୍ଧ ପାଇଁ)

ଲେଖକ

ଶ୍ରୀ କହ୍ନାଇଚରଣ ସ୍ୱାଇଁ, ଏମ୍. ଏ., ଡି. ଇଡି.
ଓ
ଶ୍ରୀ କାହ୍ନୁଚରଣ ସାମଲ, [illegible]

ପ୍ରଥମ ସଂସ୍କରଣ
ତୃତୀୟ ମୁଦ୍ରଣ
୧୯୫[illegible]

ପ୍ରକାଶକ

ଶ୍ରୀ ରାମଚନ୍ଦ୍ର [illegible]
ଓଡ଼ିଶା ବୁକ୍ ଏମ୍ପୋରିୟମ୍
ବାଲୁବଜାର, କଟକ

ମୂଲ୍ୟ ଟ ୦ ।୵
ଅତିରିକ୍ତ ଟ ୦ ।୬

# ସୂଚୀ



---

# ପାଠ ପରାଗ

## ମୁ କଅଣ କରିବ

ଆକାଶେ ରଙ୍ଗ ଚାନ୍ଦ ସଙ୍ଗତେ
ଖେଳିବି ମୁହିଁ ଖେଳିବି,
ବଉଦ କୋଳେ ମଉଜେ ଭାସି
ମେଘ ଦୋଳାରେ ଦୋଳିବି ।



ବସ୍ତ୍ର ପତର, ପୋଷାକ, ଦେହ
ସଫା ସୁତୁରା ରଖିବି,
ପଠାଣ, ପାଣ ସବୁ ସମାନ
ଏକା ପରି ମୁଁ ଦେଖିବି ।

ପଢ଼ା ବେଳରେ ପଢ଼ିବି ପାଠ
ଖେଳ ବେଳରେ ଖେଳିବି,
ସଭିଙ୍କି ନେଇ ସଭିଙ୍କି ଦେଇ
ସବୁରି ସଙ୍ଗେ ଚଳିବି

ଏକାକୀ ଖାଇ ପେଟ ଫୁଲାଇ
କେବେ ହେଲେ ନ ବସିବି,
ଭୋକୀ ଶୋଷୀଙ୍କି ଦେଖିବି ଯେବେ

ଦୁଃଖ, ବିପଦ ଆସିଲେ ମାତ୍ର
ଡରିବ ନାହିଁ ଏଡ଼ିବ,
ଉଡ଼ାଇ ବାନା ଗାଇବ ଗୀତ
ଦେଶକୁ ନୂଆ ଗଢ଼ିବ ।

## ପ୍ରଶ୍ନ

୧ । ତୁମେ ବଡ଼ ହେଲେ କଅଣ କରି ପାରିବ ଓ ବର୍ତ୍ତମାନ କଅଣ କରି ପାରିବ ?

୨ । ପଢ଼ ଓ ଲେଖ :—

ଦୁଷ୍ଟ ପିଲାଙ୍କ ସହିତ ଖେଳ ନାହିଁ । ଦୁଃଖ ବା ବିପଦ ପଡ଼ିଲେ ଡର ନାହିଁ । ଲୁଗାପଟା ଓ ଦେହ ସବୁବେଳେ ସଫା ରଖ । ଦେଶକୁ ନୂଆ କରି ଗଢ଼ ।

---

## ବାଳକର ସାହସ

ବାଲପଡ଼ା ବ୍ରାହ୍ମଣୀନଦୀ କୂଳରେ ଗୋଟିଏ ଛୋଟ ଗାଁ । ସେହି ଗାଁର ଅଧିକାଂଶ ଲୋକ ଚଷା । ହଳକାମ କରିବାପାଇଁ ଦିନରେ ବିଲକୁ ଯାଆନ୍ତି ଓ ସନ୍ଧ୍ୟା ହେଲେ ଘରକୁ ଫେରନ୍ତି ।

ଦାମ ନାୟକ ସେହି ଗାଁର ଗୋଟିଏ ଚଷା । ତାହାର ଶ୍ରୀଧର ବୋଲି ଚଉଦ ବର୍ଷର ଗୋଟିଏ ପୁଅ ଓ ସାନ ସାନ ଦୁଇଟି ଝିଅ । ମା ମଲା ଦିନରୁ ବାପ ବଡ଼ପୁଅ ଜିମା ସାନ ଛୁଆଙ୍କୁ ଛାଡ଼ିଦେଇ କ୍ଷେତକୁ ଯାଏ ।

ବର୍ଷାଦିନେ ଥରେ ଦାମ ହଳ ନେଇ ବିଲକୁ ଯାଇଛି, ହଠାତ୍ ଘାଇ ଭାଙ୍ଗି ବଢ଼ିପାଣି ମାଡ଼ି ଆସିଲା । ଶ୍ରୀଧର କଣ ... କିଛି କରି ପାରିଲା ନାହିଁ । ଆଉ ଟିକିଏ ଡେରି

ହେଲେ ପାଣି ଘରେ ପଶିପିବ । ତା ବାପା କଥା ଭାବିବାକୁ ବି ସମୟ ନାହିଁ । କିପରି ସେ ଆଗେ ଭଉଣୀ ଦୁଇଟିଙ୍କୁ ରକ୍ଷା କରିବ ।

ହଠାତ୍ ତାକୁ ଗୋଟିଏ ବୁଦ୍ଧି ଦିଶିଲା । ଘର ପାଖକୁ ଲାଗି ଗୋଟିଏ ବଡ଼ ଗଛ ଥିଲା । ସେ ପ୍ରଥମେ ଗୋଟିଏ ଛୁଆକୁ ପିଠିରେ ବାନ୍ଧି ଗଛରେ ଚଢ଼ିଗଲା । ଗଛରେ ଛୁଆଟିକୁ ଗୋଟିଏ



ଦଉଡ଼ିରେ ବାନ୍ଧି ଦେଇ ପୁଣି ତଳକୁ ଓହ୍ଲାଇ ଆସିଲା । ଘରୁ କିଛି ଖାଦ୍ୟ ଓ ଆର ଛୁଆଟିକୁ ନେଇ ପୁଣି ଗଛ ଉପରକୁ ଗଲା । ତା ପରେ ସେ ଛୁଆ ଦୁଇଟିଙ୍କୁ କୋଳରେ ଧରି ବସି ରହିଲା । ଛୁଆମାନେ ତା କୋଳରେ ଶୋଇ ପଡ଼ିଲେ । କିନ୍ତୁ ସେ ଗୋଟିଏ ଦିନ ଓ ଗୋଟିଏ ରାତି ସେହିପରି ଜାଗି ରହିଥାଏ ।

ତା ପରଦିନ ଦାମ ନାୟକ ଗୋଟିଏ ଡଙ୍ଗାରେ ସେଠାରେ ପହଞ୍ଚିଲା । ପୁଅ ଓ ଝିଅ ଦୁଇଟିଙ୍କୁ ବଞ୍ଚିଥିବାର ଦେଖି ସେ ଖୁବ ଖୁସି ହେଲା ।

ଶ୍ରୀଧର ସାହସ ପାଇଁ ତାକୁ ସମସ୍ତେ ପ୍ରଶଂସା କଲେ ।

## ପ୍ରଶ୍ନ

୧ । ଶ୍ରୀଧରକୁ କାହିଁକି ଲୋକେ ପ୍ରଶଂସା କଲେ ? ତୁମେ ଶ୍ରୀଧର ପରି କି କାମ କରି ପାରିବ ?

୨ । ଲେଖ:—ପ୍ରହ୍ଲାଦ, ଗହ୍ମାପୁନେଇଁ, ଚନ୍ଦ୍ରଧର, ଆହ୍ଲାଦ ।

---

## ଆମ ଗାଁ

ଆମ ଗାଁଟି ଶଙ୍କରପୁର
ନାଁଟି ତାର କେଡ଼େ ମଧୁର ।
ନାନା ଜାତି ଲୋକ କରନ୍ତି ବାସ
ସବୁରି ବେଉସା ଅଟଇ ଚାଷ ।
ବ୍ରାହ୍ମଣ, କରଣ, ପଠାଣ, ପାଣ
ନାହିଁ ସାନ ବଡ଼ ସବୁ ସମାନ ।
ଚଳନ୍ତି ଗୋଟିଏ କୁଟୁମ୍ବ ପରି
ସଭିଏଁ ସଭିଙ୍କି ଶରଧା କରି ।
କଳି ଗୋଳ ଏଠି ଲାଗଇ ନାହିଁ
ସେଥୁଁ ସୁଖେ ସିଏ ଥାଆନ୍ତି ରହି ।
ଗାଁ ଆମ୍ବ ତୋଟା, ତାଳ ବଗଇ
ଧାନ କ୍ଷେତ, ଖଳା, ମଇଁଷି, ଗାଈ,
ସବୁ ମୋ ଗାଁର ଅତି ସୁନ୍ଦର
ବଣ, ବିଲ, ପାଟ, ଲତା, ପଥର ।
ଯେଣୁ ମୋ ଜନମ ସେ ମାଟି ପରେ
ଉଲ୍ଲସେ ମୋ ମନ ହରଷଭରେ ।

ଭଲ ଭଲ ସେଠ କରିବ କାମ
ମନେ ରଖ ସଦା ମୋ ଗାଆଁ ନାମ ।
ତେବେ ସିନା ଲୋକେ ସୁଖ ପାଇବେ
ସେ ଗାଁର ସୁନାପୁଅ କହିବେ ।

## ପ୍ରଶ୍ନ

୧ । ତୁମ ଗାଁର ନାଁ କଣ ? ତୁମ ମାମୁଘର କେଉଁ ଗାଁରେ ?
କେଉଁ ଗାଁ ତୁମକୁ ବେଶୀ ଭଲ ଲାଗେ ଓ କାହିଁକି ?

୨ । ଲେଖଃ—ତିନ୍ଦା ବ୍ରାହ୍ମଣର ପଇତା ଦରକାର ନାହିଁ । ଗାଁର ଲୋକମାନଙ୍କୁ ଶ୍ରଦ୍ଧା କର । ଜନ୍ମଭୂମି ସ୍ୱର୍ଗଠାରୁ ବଡ଼ ।

---

## କଲିକତା ସହର

ରମାର ବଡ଼ଭାଇ ମନ୍ମଥ ତା ବାପାଙ୍କ ନିକଟରେ କଲିକତାରେ ରହି ପାଠ ପଢ଼େ । ମନ୍ମଥ କଲିକତା ବିଷୟ ବର୍ଣ୍ଣନା କରି ଖଣ୍ଡିଏ ଚିଠି ଲେଖିଥିଲା । ଶିକ୍ଷକ ମହାଶୟ ଚିଠି ପଢ଼ି ଆମ ସମସ୍ତଙ୍କୁ ଶୁଣାଇ ଦେଲେ । ଆମେ ଶୁଣି ବଡ଼ ଆଶ୍ଚର୍ଯ୍ୟ ହେଲୁଁ ।

କଲିକତା ସହର ଖୁବ୍ ବଡ଼ ସହର । ଏହା ଗଙ୍ଗାନଦୀ କୂଳରେ । ଗଙ୍ଗାନଦୀ ଆମ ଦେଶର ସବୁଠାରୁ ବଡ଼ ନଦୀ । ଏହି ନଈ ଉପରେ ହାବୁଡ଼ା ବୋଲି ଏକ ସ୍ଥାନରେ ଗୋଟିଏ ପୋଲ ତିଆରି ହୋଇଛି । ଏହାକୁ ହାବୁଡ଼ା ପୋଲ କହନ୍ତି । ହାବୁଡ଼ା ପୋଲ ପୃଥିବୀ ମଧ୍ୟରେ ଗୋଟାଏ ଆଶ୍ଚର୍ଯ୍ୟ ଜିନିସ । ଏ ପୋଲ

ଉପରେ ଗାଡ଼ି ଘୋଡ଼ା ଯା ଆସ କରେ ଓ ତଳେ ଜାହାଜ ଚାଲେ । ହାବୁଡ଼ା ପୋଲ୍ ପାର୍ ହେଲେ ପଡ଼ିବ କଲିକତା ସହର ।



ସହରରେ ଛପର ଘର ନାହିଁ । ଯୁଆଡ଼େ ଚାହିଁବ ଖାଲି ବଡ଼ ବଡ଼ କୋଠାଘର ଧାଡ଼ିକି ଧାଡ଼ି ରହିଛି । ମଝିରେ ରାସ୍ତା । ରାସ୍ତାଗୁଡ଼ିକ ପକ୍କା ଓ ଭାରି ଓସାରିଆ । ରାସ୍ତାର ଦୁଇ କଡ଼ରେ ଲୋକେ ଯିବା ଆସିବା କରନ୍ତି । ମଝିରେ ଗାଡ଼ି, ଘୋଡ଼ା, ଟ୍ରାମ, ମଟର, ରିକ୍ସା ଓ ବଳଦଗାଡ଼ି ବରାବର ଚାଲିଛି । ଚାରିଆଡ଼େ ଖାଲି ପେଁ ପାଁ, କେଁ କାଁ, ଟଂ ଟଂ ଓ ଘୋ ଘା ଶବ୍ଦ ଶୁଣିବ । ଦେଖିବ ସବୁବେଳେ ଲୋକେ ଖାଲି ଯୁଆଡ଼େ ସିଆଡ଼େ ଯାଆ ଆସ କରୁଛନ୍ତି ।

ରାସ୍ତାର ଗୋଟିଏ ପାଖରୁ ଆର ପାଖକୁ ଯିବା ବଡ଼ କଷ୍ଟ । ହୁସିଆର ହୋଇ ନ ଗଲେ ଗାଡ଼ି ଓ ଘୋଡ଼ା ଉପରେ ଚଢ଼ିଯିବ । ପୋଲିସମାନେ ଛକ ଜାଗାରେ ରହି ଗାଡ଼ି ଓ ମନୁଷ୍ୟମାନଙ୍କୁ ଠିକ୍ ବାଟରେ ଚଳାନ୍ତି ।

କଲିକତା ଦୋକାନ ବଜାର କଥା କଣ ଶୁଣିବ ? ଦେଖିଲେ ଆଖି ଖୋସି ହୋଇଯିବ । ରାସ୍ତାର ଦୁଇ କଡ଼ରେ ଛୋଟ ଓ ବଡ଼ ଅନେକ ପ୍ରକାରର ଦୋକାନ ସଜା ହୋଇ ରହିଛି ।

ବନ ରାତ ସବୁବେଳେ ଟଙ୍କା କଣା ଗୁଲୁଛି । ଯେତେବେଳେ ଯାହା ଗୁହିଁବ, ତାହା ମିଳିବ ।

କଲିକତାର ଚିଡ଼ିଆଖାନା ଗୋଟିଏ ଦେଖିବାର ଜିନିସ । ସେଥିରେ ହାତୀ, ଘୋଡ଼ା, ସିଂହ, ବାଘ, ଭାଲୁ, ମାଙ୍କଡ଼, କୁକୁର, ସାପ, ଚଢ଼େଇ, ମାଛ ପ୍ରଭୃତି ପୃଥିବୀର ସବୁ ଜୀବଜନ୍ତୁ ରହିଛନ୍ତି । ଦୁଇଅଣା ପଇସା ଦେଲେ ତୁମେ ସବୁ ଦେଖି ପାରିବ ।

## ପ୍ରଶ୍ନ

୧ । ତୁମେ କେଉଁ ସହର ଦେଖିଛ ? ଚିଡ଼ିଆଖାନା କାହାକୁ କହନ୍ତି ? କଲିକତା ଗଲେ ଚିଡ଼ିଆଖାନା ଓ ହାବୁଡ଼ା ପୋଲ ମଧ୍ୟରୁ ତୁମେ ଆଗ କାହାକୁ ଦେଖିବ ?

୨ । ଲେଖ ଓ ପଢ଼ଃ— ଗ୍ରୀଷ୍ମକାଳ, ପଦ୍ମଫୁଲ, ଜନ୍ମଦିନ, ଜୀବଜନ୍ତୁ ।

---

## ତିଳକସୁନ୍ଦରୀ କଥା

ରଜା ଟିଏ । ତାଙ୍କର ଦୁଇଟି ରାଣୀ । ଦୁଇ ରାଣୀଙ୍କର ଦୁଇଟି ଝିଅ । ସାନ ରାଣୀର ଝିଅ ନାଁ କନକସୁନ୍ଦରୀ । ବଡ଼ ରାଣୀର ଝିଅ ନାଁ ତିଳକସୁନ୍ଦରୀ । ରଜା ସାନ ରାଣୀ ଓ ଝିଅ କନକକୁ ଭାରି ଆଦର କରନ୍ତି । ବଡ଼ ରାଣୀ ଓ ତିଳକକୁ କେବେ ଦିନେ ହେଲେ ପଚାରନ୍ତି ନାହିଁ ।

କନକସୁନ୍ଦରୀ ରଜା ଉଆସରେ ମହା ମଉଜରେ ଥାଏ । କିନ୍ତୁ ତିଳକସୁନ୍ଦରୀର ଦୁଃଖ କହିଲେ ନ ସରେ । ଦିନ ନାହିଁ, ରାତି ନାହିଁ, ସବୁବେଳେ ସେ ଘର କାମରେ ଲାଗିଥାଏ । ବଡ଼ ଭଲ ପିଲାଟିଏ । ରୂପରେ ଯେମିତି ଗୁଣରେ ବି ସେମିତି ।

ଦିନେ ସାନ ରାଣୀ ରଜାଙ୍କୁ କହିଲା, "ଆଜିକାଲି ପାଚିଲା ଧାନଗୁଡ଼ାକ ଚଢ଼େଇ ଖାଇ ଯାଉଛନ୍ତି । ତିଳକସୁନ୍ଦରୀ ଏଡ଼େ ପିଲାଟାଏ ହେଲାଣି, ଖାଲି ଘରେ ବସି ଗୁଣ୍ଡା ମାରୁଛି । ବିଲକୁ ଯାଇ ଧାନ ଜଗନ୍ତା ନାହିଁ ?"

ସେଇଆ ହେଲା । ତିଳକସୁନ୍ଦରୀ ଧାନ ଜଗିବାକୁ ଗଲା । ଚଢ଼େଇଙ୍କି ହୁରୁଡ଼ାଇବା ବେଳେ ସେ ପାଟି କରି ତାଳିମାରି କହିଲା, "ଯା ରେ ବାୟା ଯା ।" ଯେମିତି ସେ ଏତକ କହୁଛି, ତାକୁ କିଏ କହିଲା, "ତୁ ରଜା ଝିଅ ତିଳକସୁନ୍ଦରୀ, ମୁଁ ତତେ ହେବ ବାହା ।"



ସତ କି ମିଛ ଶୁଣିବାପାଇଁ ସେ ଦୁଇ ତିନି ଥର ସେପରି ପାଟି କରି କହିଲା । ସବୁ ଥର ତାକୁ ସେଇଆ ଶୁଭିଲା ।

ସେ କିଛି ବୁଝି ନ ପାରି ଘରେ ମା ଆଗରେ ସବୁ କଥା କହିଲା । ମା ମନକୁ ଏ କଥା ଗଲା ନାହିଁ । ସେ ଅଝଟରେ କହି ଦେଲା, "ଆଚ୍ଛା, ତୋତେ ଯଦି କିଏ ପୁଣି ଏପରି କହେ, ତୁ ତାକୁ କହିବୁ, ହଉ ତେବେ ତୁ ଆ, ମୁଁ ତତେ ହେବ ବାହା ।"

ତିଳକସୁନ୍ଦରୀ ସେଇଆ କଲା । ସଙ୍ଗେ ସଙ୍ଗେ ଗୋଟାଏ ବୁଢ଼ା ଅଜଗର ସାପ ହିଡ଼ ମୂଳରୁ ବାହାରି ଆସିଲା । ତାକୁ ଦେଖି ତିଳକର ପାଟି ଖନ ବାଜିଗଲା । ସେ ଦଉଡ଼ି ଦଉଡ଼ି ଏକା ନିଶ୍ୱାସକେ ଘରେ । ଅଜଗର ସାପ ବି ତା ପଛେ ପଛେ ଯାଇ ହାଜର । ସମସ୍ତେ ଦେଖି ତାଟଙ୍କା । ସାନ ରାଣୀର ମନ ଭାରି ଖୁସି । ଏଇଥର ନିଶ୍ଚୟ ଅଜଗର ସାପ ମା ଝିଅ ଦୁହିଙ୍କି ଖାଇବ ।

ବାହାଘର ହେଲା । ଅଜଗର ସାପ ବେଦୀରେ ବସିଲା । ଡଳକର ଆଖିରୁ ଖାଲି ଲୁହ ଗଡ଼ୁଥାଏ । ସମସ୍ତେ ଅବାକ୍ ହୋଇ ଚାହିଁଛନ୍ତି । ଦଣ୍ଡକରେ ସବୁ ବଦଳିଗଲା । ଏ କଅଣ ? ଅଜଗର ଗଲା କୁଆଡ଼େ ? କେଡ଼େ ସୁନ୍ଦର ରଜା ପୁଅଟିଏ ।



ବାହାଘର ସରିଲା । ତଳକସୁନ୍ଦରୀ ରାଣୀ ହେଲା । ମା ଝିଅ ଦୁହେଁ ସୁଖରେ ରହିଲେ ।

ଏହା ଦେଖି ସାନ ରାଣୀ ମନ ଖାଲି ହାଇଁପାଇଁ ହେଉଥାଏ । ସେ ରଜାଙ୍କ ସଙ୍ଗେ ଘର ଜିଗର ଲଗାଇଲା । ଜଙ୍ଗଲରୁ ଗୋଟାଏ ବଡ଼ ଅଜଗର ସାପ ଧରାଇ ଆଣିଲେ । କନକସୁନ୍ଦରୀ ସହିତ ତାର ବାହାଘର ହେଲା । ଏ ଅଜଗର କି ଆଉ ରଜାପୁଅ ହେବ ! ବାହାଘର ପରେ ବର କନ୍ୟା ଉଆସରେ ରହିଲେ । ତହିଁ ଆରଦିନ ସକାଳୁ ଦେଖିବା ବେଳକୁ କନକସୁନ୍ଦରୀ ନାହିଁ । ଖାଲି ଅଜଗର ସାପଟା ଖଟ ଉପରେ ଶୋଇ ଭଡ଼ ମୋଡ଼ ହେଉଛି ।



## ପ୍ରଶ୍ନ

୧ । କନକସୁନ୍ଦରୀ କୁଆଡ଼େ ଗଲା ? ଅଳକସୁନ୍ଦରୀ କିପରି ରାଣୀ ହେଲା ?

୨ । ଲେଖ:—ସୂର୍ଯ୍ୟ ପଶ୍ଚିମ ଦିଗରେ ଅସ୍ତ ଯାନ୍ତି । ସିଂହ ଗୋଟିଏ ବନ୍ୟପଶୁ । କନ୍ଦ ଆଖୁରୁ ତିଆରି ହୁଏ । ଛୁଚ୍ଛାରେ କଳି କରିବା ଉଚିତ ନୁହେଁ



## ପନି ପରିବା

ରତ୍ନାକରର ଘର କଟକରେ । ସେ ଥରେ ଦୋଳ-ଛୁଟିରେ ତା ମାମୁଁ ଘରକୁ ଯାଇଥିଲା । ମାଇଁ ତାକୁ ଦେଖି ବଡ଼ ଆଦର କଲେ । ଅତି ଯତ୍ନରେ ତା ପାଇଁ ଭାତ, ଡାଲି, ତରକାରୀ ଓ ଭଜା ତିଆରି କଲେ । ରତ୍ନାକର ଓ ତା ମାମୁଁ ଖାଇ ବସିଲେ ।

ଖାଇବା ବେଳେ ମାଇଁ କହିଲେ, "ବାପ, କାହିଁକି ମନ ବୋଧ କରି କିଛି ତ ଖାଉ ନାହୁଁ । ତରକାରୀ ପତ୍ର ଯେମିତି ସିମିତି ଥୁଆ ହୋଇଛି । ମୋଟେ ତ ହାତ ମରା ହୋଇ ନାହିଁ ।" ରତ୍ନାକର କହିଲା, "ମାଇଁ, ପନିପରିବା ମୋତେ ସେପରି କିଛି ଭଲ ଲାଗେ ନାହିଁ । ଟିକିଏ ମାଛ କି ମାଂସ ହେଲେ ମୋର କିଛି ଦରକାର ନାହିଁ ।

ମାମୁଁ କହିଲେ, "ନାହିଁରେ ବାପ, ତୁ ବୁଝି ନାହୁଁ । ଡାଲି, ପନି ପରିବା ଓ ଶାଗ ଦେହକୁ ବଡ଼ ହିତ । ପନି ପରିବା ନ ଖାଇ ଖାଲି ମାଛ ମାଂସ ଖାଇଲେ ଦେହ ସୁସ୍ଥ ରହେ ନାହିଁ । ପିଲାଟି

ବେଳୁଁ ମାଛ ମାଂସ ଅଭ୍ୟାସ କଲେ, ବଡ଼ ହେଲେ ମୋଟେ ପନିପରିବା ଭଲ ଲାଗିବ ନାହିଁ ।”

ରତ୍ନାକର ପଚାରିଲା, “ମାଛ, ମାଂସ ଓ ଅଣ୍ଡାରେ କଣ କିଛି ଉପକାର ନାହିଁ ?”



ମାମୁଁ—ନାହିଁ ବୋଲି କିଏ କହୁଛି ? କିନ୍ତୁ ତା ସାଙ୍ଗରେ ଆଳୁ କଦଳୀ, ବାଇଗଣ, କୋବି, ବିଲାତି ବାଇଗଣ, ମୂଳା ଓ ଶାଗ ଖାଇବା ଦରକାର । ଶାଗଟା ବଡ଼ ଉପକାରୀ । ଗରିବ ଲୋକେ ଖାଲି ଶାଗ ଖାଇ ଚଳନ୍ତି ।

ରତ୍ନାକର—ମୁଁ ଏତେ କଥା କୁଆଡ଼ୁ ଜାଣିବି ?

ମାମୁଁ—ଆଚ୍ଛା କହୁଛି ଶୁଣ । ଦୁଧ ହେଉଛି ଆମର ପ୍ରଧାନ ଖାଦ୍ୟ । କି ପିଲା କି ବୁଢ଼ା, କି ରୋଗୀ କି ଭୋଗୀ, ସମସ୍ତଙ୍କ ପାଇଁ ଦୁଧ ଭଲ । ଦୁଧ ପରି ଫଳ ମଧ୍ୟ ଗୋଟିଏ ବଡ଼ ଭଲ ଜିନିଷ । ଆମ ଦେଶରେ ଆମ୍ବ, କଦଳୀ, ସପୁରି, ନଡ଼ିଆ, ପଣସ, ଅମୃତଭଣ୍ଡା, କମଳା ଓ କାଗଜି ମିଳେ । ପ୍ରତିଦିନ କିଛି କିଛି ଫଳ ଖାଇଲେ ସ୍ୱାସ୍ଥ୍ୟ ଭଲ ରହେ ।

ରତ୍ନାକର ମାମୁଁଙ୍କ କଥାରେ ବୁଝିଗଲା । ସେହିଦିନଠାରୁ ସେ ଦୁଧ, ପନ ପରିବା ଓ ଫଳମୂଳ ଖାଇଲା ।

## ପ୍ରଶ୍ନ

୧ । ପାଞ୍ଚଗୋଟି ପନିପରିବା, ପାଞ୍ଚଗୋଟି ଫଳ ଓ ତିନ ପ୍ରକାର ଶାଗର ନାମ ଲେଖ ।

୨ । ଦୁଧରୁ କ କ ଜିନିସ ତିଆରି ହୁଏ ? ତୁମେ କଣ ଖାଇବାକୁ ଭଲ ପାଅ; ଦୁଧ ନା ମାଛ ?

୩ । ଲେଖ :—ଯତ୍ନ କଲେ ରତ୍ନ ମିଳେ । ଭଲ ଖାଦ୍ୟ ଖାଇଲେ ସ୍ୱାସ୍ଥ୍ୟ ଭଲ ରହେ । ରୋଗୀମାନଙ୍କ ପାଇଁ ଦୁଧ ଓ ଫଳମୂଳ ଦରକାର ।

---

## ବାହାଦୁର ଓ ସିଂହ

ଜଣେ ରାଜାଙ୍କର ବାହାଦୁର ବୋଲି ଜଣେ ଚାକର ଥିଲା । ସେ ଦିନେ ରାଜାଙ୍କ ଘରୁ ଟଙ୍କା ପଇସା ଚୋରି କରି ପଳାଇଗଲା । କିଛି ଦିନ ଲୁଚି ଲୁଚି ଏଣେ ତେଣେ ବୁଲିଲା; କିନ୍ତୁ ଯେତେବେଳେ ଖବର ପାଇଲା ଯେ ରାଜାଙ୍କ ଲୋକେ ତାକୁ ଖୋଜୁଛନ୍ତି, ସେ ଭୟରେ ବଣକୁ ପଳାଇଗଲା ।

ଦିନେ ସେ ବଣରେ ବୁଲୁଛି, ହଠାତ୍ ଗୋଟିଏ ଭୟଙ୍କର ସିଂହ ହାବୁଡ଼ରେ ପଡ଼ିଲା । ସିଂହକୁ ଦେଖି ତାର ରକ୍ତ ପାଣି ହୋଇଗଲା । କଣ କରିବ କିଛି ଠିକ୍ କରି ପାରିଲା ନାହିଁ । ପଳାଇବ ବା କୁଆଡ଼େ ? ଗୋଟିଏ ଗଛକୁ ଆଉଜି ମନେ ମନେ ଠାକୁରଙ୍କୁ ଡାକିଲା ।

ସିଂହଟି ଧୀରେ ଧୀରେ ଆସୁଥାଏ । ବାହାଦୁର ଦୂରରୁ ଦେଖିଲା ଯେ ତା ବାଁ ଗୋଡ଼ଟା ଭାରି ଫୁଲିଛି । ପାଖକୁ ଆସି ସିଂହଟି ବିକଳ ହୋଇ ତା ଗୋଡ଼ ଦୁଇଟିକୁ ଦେଖାଇ ବାହାଦୁର ଆଗରେ ଶୋଇ ପଡ଼ିଲା । ବାହାଦୁର ଦେଖିଲା ଯେ ତା ଗୋଡ଼ରେ ଗୋଟିଏ ବଡ଼ କଣ୍ଟା ଗଳି ଯାଇଛି । ସେ କୌଶଳରେ ତାହା ବାହାର କରି ଦେଲା । ସିଂହ ଭାରି ଖୁସି ହେଲା ଓ ତାର କିଛି କ୍ଷତି ନ କରି ବଣ ଭିତରକୁ ଚାଲିଗଲା ।



ଅନେକ ଦିନ ପରେ ରାଜା ନିଜେ ଶିକାର କରିବାକୁ ଯାଇଛନ୍ତି, ବଣରେ ବାହାଦୁରକୁ ଭେଟିଲେ । ସଙ୍ଗେ ସଙ୍ଗେ ତାକୁ ଧରି ନେଇ ଆସିଲେ । ରାଜାଙ୍କର ତ ଆଗରୁ ଭାରି ରାଗ ଥାଏ । ସେ ଆଦେଶ ଦେଲେ ଯେ ବାହାଦୁରର ଦୋଷ ପାଇଁ ତାକୁ ଗୋଟିଏ ସିଂହ ମୁହଁରେ ପକାଇ ଦିଆଯିବ ।

ରାଜାଙ୍କ ଆଦେଶରେ ଗୋଟିଏ ସିଂହ ଅଣା ହେଲା । ଲୋକେ ବାହାଦୁରକୁ ସେହି ସିଂହ ଆଗରେ ପକାଇଦେଲେ । ବହୁତ ଲୋକ ଏ ଦୃଶ୍ୟ ଦେଖିବାକୁ ଠିଆ ହୋଇଥାନ୍ତି । ବାହାଦୁର ଭୟରେ ଥରୁଥାଏ ।

ସିଂହ ବାହାଦୁରକୁ ଦେଖି ଗୋଟିଏ ଗର୍ଜନ କରି ଧାଇଁ ଆସିଲା ସତ; କିନ୍ତୁ ପାଖରେ ପହଞ୍ଚିବାରୁ ତାର ସବୁ ରାଗ ଉଭେଇ-ଗଲା । ସେ ବାହାଦୁରକୁ ବେଶ୍ ଚିହ୍ନି ପାରିଲା, ବାହାଦୁର ଯୋଗୁଁ ଆଜି ତା ଜୀବନ ରହିଛି । ତେଣୁ ସିଂହଟି କିଛି ନ କରି ବାହାଦୁରର ଗୋଡ଼ତଳେ ଛିଡ଼ା ହୋଇ ତା ପାଦକୁ ଚାଟିବାରେ ଲାଗିଲା ।

ରାଜା ଏଥିରେ ଆଶ୍ଚର୍ଯ୍ୟ ହୋଇଗଲେ । ପରେ ସବୁ କଥା ଶୁଣି ବାହାଦୁରକୁ ତା ଦୋଷ ପାଇଁ କ୍ଷମା ଦେଲେ ।

## ପ୍ରଶ୍ନ

୧ । ବାହାଦୁରକୁ ସିଂହ ଖାଇଲା ନାହିଁ କାହିଁକି ?
ରାଜା ବାହାଦୁରକୁ ଖଲାସ କରିଦେଲେ କାହିଁକି ?

୨ । ପଢ଼ ଓ ଲେଖ :—

କାହାରି କ୍ଷତି କରିବା ଉଚିତ ନୁହେଁ । କ୍ଷମା ମନୁଷ୍ୟର ଗୋଟିଏ ପ୍ରଧାନ ଗୁଣ । ବର୍ଷାକାଳରେ ନଦୀର ଦୃଶ୍ୟ ବଡ଼ ଭୟଙ୍କର ।

ମିଥ୍ୟାକୁ ପାପ ବୋଲି ଜାଣି
କହିବ ସଦା ସତ୍ୟ ବାଣୀ ।

---

# ବିଷ୍ଣୁବାବୁ ଭୁଲ ବୁଝି ପାରିଲେ

କୃଷ୍ଣ ବାବୁଙ୍କର ସୁରବର୍ଦ୍ଧି ବୋଲି ଗୋଟିଏ ମୁସଲମାନ ଚପରାଶି ଥାଏ । ବାବୁ ମଫସଲକୁ ଗସ୍ତରେ ଗଲେ ସୁରବର୍ଦ୍ଧି ତାଙ୍କ ସଙ୍ଗରେ ଯାଏ । ସେ ବାବୁଙ୍କର ସବୁ କାମଦାମ କରେ ଓ ବୋଲହାକ ଶୁଣେ । କୃଷ୍ଣବାବୁ ଅନେକ ପୁଝାରି ଚାକର ରଖିଛନ୍ତି, କିନ୍ତୁ ସୁରବର୍ଦ୍ଧି ପରି କେହି ବିଶ୍ୱାସୀ ନୁହନ୍ତି ।

କୃଷ୍ଣବାବୁ ଜାତିରେ ହିନ୍ଦୁ ହେଲେ ସୁଦ୍ଧା ଅନ୍ୟ ଜାତିର ଲୋକଙ୍କୁ ଘୃଣା କରୁ ନ ଥିଲେ । ଯେ ଭଲ ଲୋକ ତାକୁ ସେ ଭଲ ପାଉଥିଲେ । କୃଷ୍ଣ ବାବୁଙ୍କର ବଡ଼ ଭାଇ ବିଷ୍ଣୁବାବୁ । ସେ କୃଷ୍ଣବାବୁଙ୍କର ଏପରି କାର୍ଯ୍ୟକୁ ଆଦୌ ପସନ୍ଦ କରୁ ନ ଥିଲେ । ସେଥିପାଇଁ ଦୁଇ ଭାଇଙ୍କର ଅନେକ ସମୟରେ କଳି ଲାଗେ ।



ଦିନକର ଘଟଣା, ବିଷ୍ଣୁବାବୁଙ୍କର ପୁଅ ଶ୍ରୀବତ୍ସ ତାଙ୍କ ଗାଡ଼ିଆ ପାଖରେ ଖେଳୁଥିଲା । ଖେଳୁ ଖେଳୁ ହଠାତ୍ ଗୋଡ଼

ଖସିଗଲା, ଶ୍ରୀବତ୍ସ ଯାଇ ଅଗାଧ ପାଣିରେ । ପୋଖରୀ କୂଳରେ କେତେ ଲୋକ ଛିଡ଼ା ହୋଇ ଖାଲି ହୋ ହା କରୁଥାନ୍ତି । କିନ୍ତୁ କେହି ସାହସ କରି ପାଣିକି ପଶୁ ନ ଥାନ୍ତି । ପାଟି ଶୁଣି ସୁବିବର୍ଦ୍ଧି ଦୌଡ଼ିଗଲା । ସଙ୍ଗେ ସଙ୍ଗେ ପୋଖରୀକୁ ଡେଇଁପଡ଼ି ଛୁଆଟିକୁ ଉଦ୍ଧାର କଲା ।

ବିଷ୍ଣୁବାବୁ ସେତେବେଳେ ଘରେ ନ ଥିଲେ । ପରେ ସବୁ କଥା ଶୁଣି ସୁବିବର୍ଦ୍ଧିକୁ ପ୍ରଶଂସା କଲେ । କୃଷ୍ଣବାବୁ ଭାଇଙ୍କ ମୁହଁରୁ ଏପରି ଶୁଣି ପଚାରିଲେ, "କି ଭାଇ, ପଠାଣଠାକୁ ଏପରି ଆଜି କଣ ପ୍ରଶଂସା କରୁଛ ?" ବିଷ୍ଣୁବାବୁ କହିଲେ, "ହଁ ତୋ'ର ବର୍ତ୍ତମାନ ସେପରି କହିବାର କଥା । ମୁଁ ମୋର ଭୁଲ ବୁଝି ପାରିଛି । ମୁ ଯେ ସୁବିବର୍ଦ୍ଧିକୁ ଏତେ ଘୃଣା କରୁଥିଲି ସେଥିପାଇଁ ମୁଁ ଆଜି ଭାରି ଲଜ୍ଜିତ । ପ୍ରକୃତରେ ତାଠାରେ ଅନେକ ଭଲ ଗୁଣ ଅଛି । ସେ ନ ଥିଲେ ମୋ ପୁଅ କଣ ଆଜି ଜୀବନରେ ଥାଆନ୍ତା ?"

## ପ୍ରଶ୍ନ

୧ । ବିଷ୍ଣୁବାବୁ ସୁବିବର୍ଦ୍ଧିକୁ କାହିଁକି ପ୍ରଶଂସା କଲେ ? ସୁବିବର୍ଦ୍ଧ ଜାତିରେ କଣ ଥିଲା ? ତୁମ ଗାଁରେ କି କି ଜାତିର ଲୋକ ଅଛନ୍ତି କହିଲ ? କୃଷ୍ଣବାବୁ କାହିଁକି ସୁବିବର୍ଦ୍ଧିକୁ ଭଲ ପାଉଥିଲେ ?

୨ । ଲେଖ :—

ବୈଷ୍ଣବ ଗୋଟିଏ କାପ୍ତା ଚଢ଼େଇ ବନ୍ଧୁକରେ ମାରିଲା । ଉଦ୍ଧବ ଭଗବାନଙ୍କର ଜଣେ ବଡ଼ ଭକ୍ତ ଥିଲେ । ଝରକାରେ ପର୍ଦ୍ଦା ଦେଲେ ସୁନ୍ଦର ଦିଶେ । ମତ୍ସ୍ୟପାଳନ ଗୋଟିଏ ଭଲ ବ୍ୟବସାୟ ।

## ସକାଳ ହେଲାଣି

ବିତି ତ ଗଲାଣି ରାତ୍ରି ହେଲାଣି ସକାଳ
ଉଠ ନ କରଣ ମଠ ଢ଼ଠ ରେ ସମ୍ହାଳ ।
କେତେବେଳୁଁ କୁଆ ସବୁ କରିଲାଣି କାଆ
ଶିର ଶିର ବହିଲାଣି ଶୀତଳିଆ ବାଆ ।
ମହୁମାଛି ଉଡ଼ି ଉଡ଼ି ଫୁଲୁଁ ଫୁଲେ ବସେ
ସବୁଜ ପତର ତଳେ ଫୁଲକଢ଼ି ହସେ ।
ଦୁବଘାସେ ଥୋପା ଥୋପା ପଡ଼ିଛି କାକର
ବିଛୁଇ ଦେଇଛି କିଏ ସତେ ବା ସୁନ୍ଦର ।
ଉଇଁ ଆସିଲାଣି ଦେଖ ଆକାଶରେ ରବି
ସିନ୍ଦୂର ଥାଳିଆ ପରି ଦିଶେ ତାର ଛବି ।
ଗାଈ ଗୋରୁମାନେ ସବୁ ହମ୍ବା ରବ କରି
ଗୋଠ ଛାଡ଼ି ପଡ଼ିଆକୁ ଗଲେଣି ବାହାରି ।
ହଳକାମ ପାଇଁ ଚଷା ଚଳିଲାଣି ବିଲେ
ଖେଳ ପାଇଁ ଦାଣ୍ଡେ ସବୁ ମିଳିଲେଣି ପିଲେ ।
ଯେ ଯାହାର କାମ ପାଇଁ ହୋଇଲେଣି ସଜ
ତୁମେ କିଆଁ ଶୋଇଅଛ ନ ଛାଡ଼ିଣ ଶେଯ ।
ସକାଳେ ବୁଲିଲେ ମନ ହୋଇବ ସରସ
ମାଡ଼ି ବସିବଟି ରୋଗ ହୋଇଲେ ଅଳସ ।

### ପ୍ରଶ୍ନ

୧ । ତୁମେ ସକାଳେ ଉଠି କଣ କର ? ସୂର୍ଯ୍ୟ କେଉଁ ଦିଗରେ ଉଇଁ କେଉଁ ଦିଗରେ ଅସ୍ତ ଯାନ୍ତି ?

୨ । ପଢ଼ି ହାଉ ଠିକ୍ କ ଭୁଲ କହ :—
ଆମ୍ଭେମାନେ ହାନରେ ଶୋଉ ଓ ଗାଡରେ କାମ କରୁ । ସକାଳୁ ଉଠିଲେ ଦେହ ଅଳସ ଲାଗେ । ମହୁମାଛି ଫୁଲରୁ ମହୁ ଶୋଷିନଏ । ସକାଳେ ସୂର୍ଯ୍ୟଙ୍କ କିରଣ ନାଲ ଦେଖାଯାଏ । ସକାଳ ବୁଲା ଦେହକୁ ବଡ଼ ହିତ ।

---

## ଭିନ୍ନ ଦେଶର ପିଲା

ଏ ପିଲାଟିର ଘର ଇଂଲଣ୍ଡରେ । ଯା ନାଁ ଜଲ । ଇଂଲଣ୍ଡରେ ଭାରି ଶୀତ ହୁଏ । ଦେଖ, ଜଲ କପଡ଼ା ପୋଷାକ ପିନ୍ଧିଛି । ଜଲ ଦେଖିବାକୁ ଭାରି ଗୋରା, ତା ବାଳ କଳରା । ସେ ପ୍ରତିଦିନ ପାଠ ପଢ଼ିବାକୁ ବିଦ୍ୟାଳୟକୁ ଯାଏ । ପଢ଼ା ସାରି ସେ ତା ସାଥି ପିଲାମାନଙ୍କ ସଙ୍ଗତେ ଖେଳେ । ଡାଲି ଭାତ ଖାଏ ନାହିଁ । ମାଛ, ମାଂସ, ରୁଟି, ଲହୁଣୀ ଓ ଫଳ ମୂଳ ତାର ବଡ଼ ପ୍ରିୟ-ଖାଦ୍ୟ ।



ଏ ପିଲାଟିର ଘର ବରଫଦେଶରେ । ଯା ନାଁ ମେଟିକ୍ । ତା ଦେଶରେ ଭାରି ଶୀତ ହୁଏ ଓ ସବୁବେଳେ ବରଫ ପଡ଼େ । ନଈ ଓ ସମୁଦ୍ରର ପାଣି ବରଫ ପାଲଟି ପଥର ପରି ଶକ୍ତ ହୋଇଯାଏ



ଦେଖ ମେଟିକ୍ କପର ବରଫ ଉପରେ ଗୋଟାଏ ସ୍ଲେଜ୍ ଗାଡ଼ିରେ ବସିଛି । ସେ ଗାଡ଼ିକୁ ଛଅଟା କୁକୁର ଟାଣୁଛନ୍ତି । କେବେ କେବେ ବଲ୍ଗା ହରିଣ ମଧ୍ୟ ସେ ଗାଡ଼ି ଟାଣନ୍ତି । ମେଟିକ୍ ବରଫରେ ଘର କରି ରହେ । ତା ଘରକୁ ଇଗ୍ଲୁ କହନ୍ତି । ମେଟିକ୍ ଭାଲୁ ମାଂସ, ହରିଣ ମାଂସ ଓ ତିମିମାଛ ଖାଏ, ତିମିମାଛ ଓ ହରିଣ ଚମଡ଼ାରେ ପୋଷାକ ତିଆରି କରି ପିନ୍ଧେ ଓ ଘୋଡ଼ାଇ ହୁଏ । ମେଟିକ୍ ଲେଖାପଢ଼ା କିଛି ଜାଣେ ନାହିଁ । ×

ଏ ପିଲାଟିର ଘର ଆରବ ଦେଶରେ । ଯା ନାମ ନଜିବ୍ । ନଜିବ୍‌ର ଦେଶ ଗୋଟାଏ ମସ୍ତବଡ଼ ମରୁଭୂମି । ଯୁଆଡ଼େ ଚାହିଁବ ସିଆଡ଼େ ଖାଲି ଉଗଡ଼ା ବାଲି । ତା ଦେଶରେ ଫସଲ କିଛି ହୁଏ ନାହିଁ । ନଜିବ୍ ଖଜୁରି କୋଳି ଖାଇବାକୁ ଖୁବ୍ ସୁଖ ପାଏ । ନଜିବ୍‌ର ବାପା କେତେଗୁଡ଼ିଏ ଓଟ ପାଳିଛନ୍ତି । ନଜିବ୍ ଓଟ



ଉପରେ ବସି ବାଲିରେ ଯିବା ଆସିବା କରେ । ସେ କେବେ କେବେ ଦୁଧ ଏବଂ ଓଟମାଂସ ଖାଏ । ନଜିବ୍ ଦେଶରେ ବର୍ଷା

ନ ହେବାରୁ ଆକାଶ ବଡ଼ ନିର୍ମଳ ଦେଖାଯାଏ । ତା ବାପା ସନ୍ଧ୍ୟାବେଳେ ତାକୁ ପାଖରେ ବସାଇ ଆକାଶର ପ୍ରଧାନ ପ୍ରଧାନ ନକ୍ଷତ୍ରଗୁଡ଼ିକ ଚିହ୍ନାଇ ଦିଅନ୍ତି ।

## ପ୍ରଶ୍ନ

୧ । ଏ ତିନୋଟି ପିଲାଙ୍କ ମଧ୍ୟରୁ ତୁମେ କାହାକୁ ପସନ୍ଦ କରୁଛ ? ବରଫ ଦେଶରେ ତୁମେ ରହି ପାରିବ ? ନଜିବ୍ ତୁମ ଦେଶକୁ ଆସିଲେ ତୁମେ ତାକୁ କଣ ଖାଇବାକୁ ଦେବ ?

୨ । ଲେଖ: — ଶ୍ଳୋକ, ବଲ୍‌ଗା, ଖଡ଼୍‌ଗ, ପ୍ଲେଗ୍, ସ୍ଳେଟ୍ ।



## ତୋର ଅଧେ ମୋର ଅଧେ

ଜଣେ ରଜା ଥାଆନ୍ତି । ତାଙ୍କର ମାଛ ଖାଇବାରେ ଭାରି ସଉକ । କେହି କେଉଟ ଭଲ ମାଛ ଧରିଲେ ଆଗେ ନେଇ ରଜାଙ୍କ ପାଖେ ହାଜର ହୁଏ । ରଜା ବି ତାକୁ ଉପଯୁକ୍ତ ପୁରସ୍କାର ଦିଅନ୍ତି ।

ଦିନକର ଘଟଣା । ଜଣେ ବୁଢ଼ା କେଉଟ ଗୋଟାଏ ବଡ଼ ରୋହିକ୍‌ଟି ମାଛ ଧରିଲା । ମନ ଭାରି ଖୁସି, କାରଣ ରଜାଙ୍କୁ ଦେଲେ ଭଲ ପୁରସ୍କାର ପାଇବ ।

କେଉଟ ସେ ମାଛଟିକୁ ଘେନି ସିଧା ରଜାଙ୍କ ଉଆସକୁ ଆସିଲା । ସିଂହଦ୍ୱାର ପାଖରେ ଦରୁଆନ୍ ଛିଡ଼ା ହୋଇଥାଏ । ସେ ସେ କେଉଟକୁ ଭିତରକୁ ଛାଡ଼ି ଦେଲା ନାହିଁ । ଟିକିଏ ଭାବି କେଉଟକୁ କହିଲା, "ଆରେ, ଗୋଟିଏ କଥା କହିବି, ମାନିବୁ ?

ଶୁଣ୍, ତୁ ରାଜାଙ୍କଠାରୁ ଯାହା ପାଇବୁ ସେଥିରୁ ଅଧେ ଯଦି ମତେ ଦେବୁ ତାହା ହେଲେ ଭିତରକୁ ଛାଡ଼ି ଦେବି ।"

କେଉଟ ବିଚରା ବାଧ ହୋଇ ହଁ ଭରିଲା । ରାଜାଙ୍କ ପାଖରେ ପହଞ୍ଚି ଯେମିତି ମାଛଟିକୁ ଦେଖାଇ ଦେଇଛି ରାଜା ଭାରି ଖୁସି ହେଲେ । କେଉଟକୁ ପଚାରିଲେ, "ଆରେ ବାଃ, ଖୁବ୍ ଭଲ ମାଛଟିଏ ତ ଆଣିଛୁ । କଣ ପୁରସ୍କାର ନେବୁ, କହ ।"



କେଉଟ ହାତ ଯୋଡ଼ି କହିଲା, "ଆଜ୍ଞା, ମହିମା ମୋର ଟଙ୍କା ପଇସା କିଛି ଦରକାର ନାହିଁ । ମୋ ପିଠିରେ ଖୁବ୍ ଜୋରରେ କୋଡ଼ିଏଟି ପାହାର ଦିଅନ୍ତୁ ।"

ଏ କଥା ଶୁଣି ରାଜା ଆଶ୍ଚର୍ଯ୍ୟ ହୋଇ ଭାବିଲେ, ଲୋକଟା ପାଗଳ ନା କଣ ? ପୁଣି ବଡ଼ ପାଟିରେ ପଚାରିଲେ, "ଆରେ ବୁଢ଼ା, ମାଛ ପାଇଁ ତୁ କଣ ଚାହୁଁ ?" କେଉଟ କହିଲା, "ଆଜ୍ଞା, ମୋ ପିଠିରେ କୋଡ଼ିଏ ପାହାର ।"

ରାଜା କିଛି ବୁଝି ନ ପାରି କୌତୁକ ଦେଖିବା ପାଇଁ କୋଡ଼ିଏ ପାହାର ଦେବାକୁ ଆଦେଶ ଦେଲେ ।

ଦଶ ପାହାର ଦିଆ ସରିଛି; କେଉଟ କହିଲା, "ଆଜ୍ଞା, ସେତିକ ଆଉ । ମୋର ଜଣେ ଅଂଶୀଦାର ହଜୁରଙ୍କ ଫାଟକ ପାଖରେ ଛିଡ଼ା ହୋଇଛି । ସେ ବାକି ଦଶ ପାହାର ଖାଇବ ।"

ଏ କି ଅଦ୍ଭୁତ କଥା ! ରାଜା କିଛି ବୁଝି ପାରିଲେ ନାହିଁ । ଶେଷରେ ସେ କେଉଟଠାରୁ ସମସ୍ତ କଥା ଶୁଣି ଦରୁଆନ୍ ଉପରେ ଭାରି ରାଗିଗଲେ । ପଚିଶ ପାହାର ଦେଇ ତାକୁ କାର୍ଯ୍ୟରୁ ବରଖାସ୍ତ କରିଦେଲେ । କେଉଟର ବୁଦ୍ଧି ସକାଶେ ତାକୁ ପଚିଶ ଟଙ୍କା ପୁରସ୍କାର ଦେଲେ ।"

## ପ୍ରଶ୍ନ

୧ । ଦରୁଆନ୍ କଣ କରିଥିଲେ ଚାକିରିରୁ ବରଖାସ୍ତ ହୋଇ ନ ଥାନ୍ତା ?

୨ । ତୁମ ଭିତରୁ ଜଣେ ରଜା, ଜଣେ କେଉଟ ଓ ଆଉ ଜଣେ ଦରୁଆନ୍ ହୋଇ ନିଜ ନିଜ କଥା କହିଯାଅ ।

୩ । ପଢ଼ ଓ ଲେଖ —

ନେହେରୁ ଭାରତର ଉପଯୁକ୍ତ ପ୍ରଧାନ ମନ୍ତ୍ରୀ । ମୂଷିକର ଦାନ୍ତ ବଡ଼ ତୀକ୍ଷ୍ଣ । ଅପ୍ସରାମାନେ ସ୍ୱର୍ଗରେ ଥାନ୍ତି । ଦରୁଆନ୍ ରିସ୍ୱତ୍ ଖାଇବାରୁ ରାଜା ତାକୁ କାର୍ଯ୍ୟରୁ ବରଖାସ୍ତ କରି ଦେଲେ । କେଳାମାନେ ବଡ଼ ଅଦ୍ଭୁତ ଖେଳ ଦେଖାନ୍ତି ।

---

# ବାଘ ଓ ଫାଘ

ଚରିବାକୁ ଛେଳଟିଏ ଯାଏ ନିତି ବଣେ
ଦିନ ଆଉଁ ଆଉଁ ଫେରେ ରହେ ନାହିଁ କେଟଣେ ।
ବନେ ହୋଇଗଲା ରାତି
କି କରିବ ବୋଲି ତାର ଦୁଲୁକିଲା ଛାତି ।

ଦେଖିଲା ସେ ଗୁମ୍ଫା ଏକ ବଡ଼ ଖୋଲ ତାର
ବିଚାରିଲା, "କଟାଇବି ରାତି ଯା ଭିତର ।
କେହି ନ ଦେଖିବେ ଏଠି
ଲୁଚି ରହି ସକାଳୁ ମୁଁ ପଳାଇବି ଉଠି ।"

ବାଘର ସେ ଗୁମ୍ଫା ବୋଲି ନ ଜାଣଇ ଛେଳି
ଜୀବନ ବିକଳେ ପରା ପଶିଅଛି ଗଳି ।
ରାତି ନୋହୁଣୁ ବି ଘଡ଼ି
ଚମକି ପଡ଼ିଲା ଛେଳି ଶୁଣି ବାଘ ରଡ଼ି ।

ଗୁହୁଁ ଗୁହୁଁ ବାଘ ଆସି ମିଳିଲା ନିକଟ
ଉପାୟ ପାଞ୍ଚିଲା ଛେଳି ଦେଖି ଏ ସଙ୍କଟ ।
ଠିଆ ହେଲା ଦମ୍ଭ ଧରି
ଗଗେ ଦାଢ଼ି ଫୁଲାଇ ସେ କଲା ଘୋର ରଡ଼ି ।

ଝପଟି ଆସିଲା ବାଘ ପଚାରିଲା ରାଗି
"କିଏ ରେ ତୁ ପାଜି ଏଠି ପଶିଛୁ କି ଲାଗି
ତୋତେ ନ ମାଡ଼ଇ ଡର
ଜାଣି ନାହୁଁ କରେ ବ୍ୟେର କାହାର ଏ ଘର ?"

ଗରଜ କହିଲା ଛେଳି, "ଆରେ ଆରେ ବାଘ,
ଚିହ୍ନି ପାରୁ ନାହୁଁ ତୁ କି ଘରେ ଦେଖି ଫାଘ,
ଜାଣ ସବୁରି ମୁଁ ଯମ
କେତେ ବାଘ ସିଂହ ପରି କରିଛି ହଜମ ।"



ନ ସରୁଣୁ କଥା ବାଘ ମଣିଲା ଚମ୍କଟ
ଡରି ବେଗେ ପଳାଇଲା ନ ରହି ନିକଟ ।
ଛେଳି ହେଲା ବଡ଼ ଖୁସି
ଦିନ ହେବାକ୍ଷଣି ବଣୁଁ ପଳାଇଲା ଖସି ।

## ପ୍ରଶ୍ନ

୧ । ବାଘ ଓ ଛେଳି ମଧ୍ୟରେ କିଏ ବୁଦ୍ଧିଆ ଓ କାହିଁକି ?

୨ । ପଢ଼ ଓ ଲେଖ :—

ବୁଦ୍ଧି ଯାର ବଳ ତାର । ବାଘର ଫାଘକୁ ଡର ।
କଅ ପାଣିଠାରୁ ବାମ୍ଫୀ ପାଣି ଭଲ ।

# ରାବଣ ସୀତାଙ୍କୁ ନେଇଗଲା

ପଞ୍ଚବଟୀ ବଣରେ ପତର କୁଡ଼ିଆଟିଏ । ସେଥିରେ ରାମ, ଲକ୍ଷ୍ମଣ ଓ ସୀତା ତିନିହେଁ ଥାନ୍ତି । ଦିନେ ରାମ ଆଉ ଲକ୍ଷ୍ମଣ ମୃଗ ମାରି ଯାଇଛନ୍ତି । ସୀତା ଏକୁଟିଆ କୁଡ଼ିଆରେ ଅଛନ୍ତି ।

ଏହି ସମୟରେ କୁଆଡ଼ୁ ଗୋଟାଏ ବାବାଜି ଆସି କୁଡ଼ିଆ ଦୁଆରେ ଡାକିଲା, "ମା, ଗଣ୍ଡିଏ ଭିକ୍ଷା ମିଳୁ" । ସୀତାଙ୍କର ତ ଦୁଃଖୀ



ଲୋକଙ୍କଠାରେ ଭାରି ଦୟା । ସେ ସଙ୍ଗେ ସଙ୍ଗେ କିଛି ଫଳ ମୂଳ ଧରି ବାହାରି ଆସିଲେ ।

ବାବାଜି ତା ମୂର୍ତ୍ତି ଦେଖାଇ ଦେଲା । ସୀତା ଫଳମୂଳ ଦେଉଛନ୍ତି, ବାବାଜି ହଠାତ୍ ସୀତାଙ୍କ ହାତକୁ ଧରି ପକାଇଲା ଆଉ ବାବାଜି ନା ଫାବାଜି । ଗୋଟାଏ ଭୟଙ୍କର ରାକ୍ଷସ ସେ! ତାର ଦଶଟା ମୁଣ୍ଡ, କୋଡ଼ିଏଟା ହାତ ।

ଯା ଦେଖି ସୀତାଙ୍କର ବୁଦ୍ଧି ହଜିଗଲା । ସେ ଗୁଣ୍ଡିପିଟି ହୋଇ ପଳାଇ ଯିବାକୁ ଚେଷ୍ଟା କଲେ । ଦୁଷ୍ଟ ଅସୁର କି ଆଉ ଛାଡ଼େ ?

ସେ ସୀତାଙ୍କୁ କହିଁ ନେଇ କହିଲା, "ତୁ ମୋତେ ଚହ୍ନିନାହୁଁ, ମୁଁ ଏହି ଲଙ୍କାର ରାଜା ରାବଣ । ମୋ ଘର ସୁନା ରୁପାରେ ତିଆରି । ତୁ ମୋ ରାଣୀ ହେଲେ ଖାଲି ସୁନାରେ ଗୁଡ଼ି ହୋଇଯିବୁ, ବହୁତ ସୁଖ ପାଇବୁ । ଏଠି ବଣଝାରେ ଏପରି କଷ୍ଟ କାହିଁକି ଭୋଗୁଛୁ ।"

ସୀତା କି ଏଥିରେ ଭୁଲନ୍ତି ? ସେ ଖାଲି କାନ୍ଦୁଥାନ୍ତି । ରାମ ଲକ୍ଷ୍ମଣଙ୍କୁ କେତେ ଡାକିଲେ । କିଏ ଅଛି ଶୁଣିବ ? କହୁଁ କହୁଁ ଗୋଟାଏ ରଥ ଆସି ପହଞ୍ଚିଲା । ଦୁଷ୍ଟ ରାବଣ ସୀତାଙ୍କୁ ସେ ରଥରେ ବସାଇ ଆଖି ପିଛୁଳାକେ କୁଆଡ଼େ ଉଡ଼ିଗଲା । ସୀତା ଖାଲି ବାଡ଼େଇ କଇଁଡ଼ ହେଉଥାନ୍ତି ।

ଦୁଇ ଭାଇ ଫେରି ଆସି ଦେଖନ୍ତି ତ ସୀତା ନାହାଁନ୍ତି । ସେମାନେ ପରେ ସବୁ ଜାଣିଲେ । ଲଙ୍କାକୁ ଯାଇ ରାବଣକୁ ମାରି ସୀତାଙ୍କୁ ଆଣିଲେ ।

## ପ୍ରଶ୍ନ

୧ । (କ) ସୀତା କଣ କରିଥିଲେ ରାବଣ ତାଙ୍କୁ ନେଇ ପାରି ନ ଥାନ୍ତା ?

(ଖ) ସୀତା ରାବଣର ରାଣୀ ହେବାକୁ ମଙ୍ଗିଲେ ନାହିଁ କାହିଁକି ?

୨ । ପଢ଼ ଓ ଲେଖ —

ଚୋରି କଲେ ଦଣ୍ଡ ପାଇବ । ଗୁରୁବାରରେ ଘରେ ଘରେ ଲକ୍ଷ୍ମୀଠାକୁରାଣୀଙ୍କ ପୂଜା ହୁଏ ।

———

# ମଶା ଓ ମାଛି

ଦିନେ ଗୋଟିଏ ମଶା ଓ ଗୋଟିଏ ମାଛି କଳି କଜିଆ ଲଗିଲେ । ମଶା କହିଲା, "ମୁଁ ବଡ଼" । ମାଛି କହିଲା, "ମୁଁ ବଡ଼" । ଏହି ସମୟରେ ଜଣେ ଡାକ୍ତର ଆସି ସେଠାରେ ପହଞ୍ଚିଗଲେ । ସେ କହିଲେ 'ଆଚ୍ଛା, କାହାର କଣ କରାମତି ମୋତେ କହିଲ ?"



ମଶା ଗୁଣୁଗୁଣୁ ହୋଇ କହିଲା, "ଶୁଣନ୍ତୁ, ଥରେ ମୁଁ ଜଣକ ଘରପାଖ ଅଳିଆଗଦାରେ ଥିଲି । ହେମନ୍ତ ସନ୍ଧ୍ୟା ହୋଇଛି, ମୁଁ ମୋ ସାଙ୍ଗ ଭାଇମାନଙ୍କୁ ସଙ୍ଗରେ ନେଇ ତା ଘର ଭିତରକୁ ପଶିଲି । ରାତିରେ ଘରର ଲୋକମାନେ ଖାଇପିଇ ନିଶ୍ଚିନ୍ତରେ ଶୋଇଲେ । ସେମାନେ ମଶାରି ଟାଙ୍ଗି ନ ଥିଲେ । ଆମେ ମନଇଚ୍ଛା ସେମାନଙ୍କୁ ରାତିସାରା କାମୁଡ଼ିଲୁଁ । କିଛିଦିନ ପରେ ସେ ଘରର ଲୋକେ ମ୍ୟାଲେରିଆ ଜ୍ୱରରେ ପଡ଼ିଲେ । ଗୋଟିଏ ପିଲା ଜ୍ୱର ଭୋଗି ଭୋଗି ଶେଷରେ ମଲା । ଏ ଦିନା ଗୋଟିଏ ଘରର କଥା ଶୁଣିଲ । ଏହିପରି କେତେ କୁଆଡ଼େ ମରୁଛନ୍ତି । ଜାଣିଲ ଏବେ ମୋ କରାମତି । ମାଛି ଭଲା କଣ କରିପାରେ କହୁ ତ ?"

ମଶା ପାଟିରୁ କଥା ନ ସରୁଣୁ ମାଛି ଉଠିପଡ଼ି ଭିଁ ଭିଁ ହୋଇ କହି ବସିଲା, "ଶୁଣ ବାବୁ, ମୋର ତ ଭଲ, ମନ୍ଦ,

ଥଳଆ, ସଫା କରୁ ବଗୃର ନାହିଁ । ମଇଲା ଉପରେ ବସିବ । ଦୁଧ, ଘିଅ, ମାଛ, ମାଂସ, ଭାତ, କଦଳୀ, ଆମ୍ବ, ପଣସ ପ୍ରଭୃତି ଭଲ ଜନଷ ପାଇଲେ ବ ଟିକିଏ ସୁଙ୍ଘି ଦେବ । ଥରେ ଗୋଟିଏ ଗାଁରେ ହଇଜା ଲଗିଥାଏ । ସେହି ଗାଁକୁ ଲଗି ଆଉ ଗୋଟିଏ



ଗାଁରେ ଜଣେ ବଡ଼ ଲୋକ ଥାନ୍ତି । ତାଙ୍କ ପୁଝାରୀ ଗ୍ରେଷେଇ-ବାସ କରି ସବୁ ଅଢୋଙ୍କା ପକାଇ ଦେଇଯାଏ । ମୋର ତ ବେଶ୍ ମଜା । ମୁଁ ଖାଇବା ଜନଷ ଉପରେ ବସି ନଜେ ତ ବାସନା ସୁଙ୍ଘିଲି, ସେଥିରେ ହଇଜା ଜମ୍ବସବୁ ଗୁଣ୍ଡ ଦେଇ ଆସିଲି । ଘରଲୋକେ ବା ଏତେ କଥା କପରି ଜାଣିବେ ? ସେମାନେ ଆନନ୍ଦରେ ଖାଇଲେ । ହେଲ ପେଟ ଖରାପ । ଧଣଲ ହଇଜା । ବହୁ ଚକତ୍ସା ପରେ ସେମାନେ ଭଲ ହୋଇ ଗଲେ । ମୋ କରାମତି କଥା କଏ ଶୁଣିବ ? ମୋ ଯୋଗୁଁ ପରା ଗୋଟାଏ ଗୋଟାଏ ଗାଁ ନଷ୍ଟ ହୋଇ ଯାଇଛି । କହିଲ ଭଲା, କଏ ବଡ଼ ? ମଶା ନା ମୁଁ ?"

ଡାକ୍ତର ବାବୁ ସବୁ ଶୁଣି କହିଲେ, "ତୁମେ ଦୁହେଁ ଖରାପ । କେହି ଭଲ ନୁହଁ । ଗାଁ ଗହଳରେ ମୂର୍ଖ ଲୋକମାନେ କଛି ଜାଣନ୍ତି ନାହିଁ । ତେଣୁ ତୁମେ ଦୁହେଁ ସେଠାରେ ବେଶ୍ ଆଡ୍ଡା ଜମାଇ

ପାରୁଛ । ମଶାରି ଟାଙ୍ଗି ଶୋଇଲେ ମଶା ଆଦୌ କାମୁଡ଼ି ପାରିବ ନାହିଁ । ଖାଦ୍ୟ ଜିନିଷ ସବୁବେଳେ ଘୋଡ଼ାଇ ରଖି ଚଟକା ଖାଇଲେ ମାଛି ବସି ପାରିବ ନାହିଁ । ଘରଦ୍ୱାର ସଫା ସୁତୁରା ରଖିଲେ ତୁମେ ଦୁହେଁ କୁଆଡ଼େ ଛାଡ଼ି ପଳାଇ ଯିବ ।"

ମଶା ଓ ମାଛି ଡାକ୍ତରଙ୍କୁ ଚିହ୍ନିପାରି ପଳାଇଗଲେ ।

## ପ୍ରଶ୍ନ

୧ । ତୁମମାନଙ୍କ ମଧ୍ୟରୁ ଜଣେ ମଶା, ଜଣେ ମାଛି ଓ ଆଉ ଜଣେ ଡାକ୍ତର ହୋଇ ନିଜ ନିଜ କଥା କହିଯାଅ ।

୨ । ପଢ଼ି ଓ ଲେଖ :—ଖାଦ୍ୟଦ୍ରବ୍ୟ ଚଟକା ଖାଇବା ଉଚିତ । ଘରଦ୍ୱାର ସଫାସୁତୁରା ରଖ । ଡାକ୍ତରମାନେ ରୋଗୀମାନଙ୍କର ଚିକିତ୍ସା କରନ୍ତି । ଲୋକମାନଙ୍କୁ ସ୍ୱାସ୍ଥ୍ୟ ବିଷୟରେ ଉପଦେଶ ଦିଅ ।

---

# ଗାନ୍ଧିଜୀ



ଶିକ୍ଷକ—ଏ କାହାର ଛବି କହିଲ ?

ଛାତ୍ର—ଏ ଖର **ମହାତ୍ମା** ଗାନ୍ଧିଙ୍କ ଛବି ।

ଶି – ଆଚ୍ଛା, ଗାନ୍ଧିଙ୍କୁ ଲୋକେ କାହିଁକି ଦେବତା ପରି ପୂଜା କରୁଛନ୍ତି ?

ଛା—ସେ ଆମ ଦେଶକୁ ସ୍ୱାଧୀନ କରିଛନ୍ତି । ଆଗରୁ ଇଂରେଜ-ମାନେ ଆମ ଦେଶରେ ରାଜୁତି କରୁଥିଲେ । ଗାନ୍ଧି ଆମ ଦେଶକୁ ସେମାନଙ୍କ ହାତରୁ ମୁକ୍ତ କରିଛନ୍ତି । ତେଣୁ ଆଜକାଲି ଲୋକେ ତାଙ୍କୁ ଦେବତା ପରି ପୂଜା କରନ୍ତି ।

ଶି—ହଁ, ଠିକ୍ କଥା । ଆଚ୍ଛା, ତାଙ୍କ ସମ୍ବନ୍ଧରେ ଆଉ କିଛି ଜାଣ ?
ଛା---ନା, ଆଜ୍ଞା, ଅନୁଗ୍ରହ କରି ଆମକୁ କିଛି କହନ୍ତୁ ।
ଶି—ହଉ, ତେବେ ଶୁଣ । ଗାନ୍ଧିଙ୍କର ଜନ୍ମସ୍ଥାନ ଗୁଜରାଟରେ । ତାଙ୍କର ପିଲାକାଳରେ ନାଁ ଥିଲା ମୋହନ । ଗାନ୍ଧି ପିଲାଦିନରୁ ମିଥ୍ୟା ଓ ଅନ୍ୟାୟକୁ ବଡ଼ ଘୃଣା କରୁଥିଲେ । ସେ ଏଠିକା ପାଠ ପଢ଼ି ସାରି ବିଲାତ ଗଲେ । ସେଠାରୁ ଓକିଲାତି ପାଶ୍ କରି ଭାରତକୁ ଫେରିଲେ । ସେ ଆସି ଦେଖିଲେ ଯେ, ଆମ ଦେଶ ପରାଧୀନ । ତାକୁ ଇଂରେଜମାନେ ଅଧିକାର କରି ବସିଛନ୍ତି । ତେଣୁ ସେମାନଙ୍କୁ କିପରି ତଡ଼ିବେ, ଗାନ୍ଧି ଦିନରାତି ଭାବିବାକୁ ଲାଗିଲେ । ସେ ଇଂରେଜମାନଙ୍କ ସହିତ ଯୁଦ୍ଧ ନ କରି ସେମାନଙ୍କୁ ବୁଝାଇ କହିଲେ, "ତୁମେ ଆମ ଦେଶ ଛାଡ଼ି ଚାଲିଯାଅ । ଆମ ଦେଶ ଆମେ ଶାସନ କରିବୁ ।"
ଛା—ଆଚ୍ଛା, ଆମ ଦେଶରେ ଏତେ ଲୋକ, ଇଚ୍ଛା କରିଥିଲେ ତ ଆମେ ଅଳ୍ପେଇରେ ଗୋରା ସାହେବମାନଙ୍କୁ ଯୁଦ୍ଧ କରି ଘଉଡ଼ାଇ ଦେଇଥାନ୍ତୁ ।
ଶି—ତା ଠିକ୍, କିନ୍ତୁ ଗାନ୍ଧିଙ୍କର ମତ ଥିଲା ଅହିଂସା । ଯାହାର ଅର୍ଥ ହିଂସା ବା ଯୁଦ୍ଧ ନ କରି ଶାନ୍ତିରେ ସବୁ କାମ କରିବା । ଏଥିଯୋଗୁଁ ଗାନ୍ଧିଙ୍କୁ ସମସ୍ତେ ମହାତ୍ମା କହୁଥିଲେ । ସେ ଇଂରେଜମାନଙ୍କ ସହିତ ଆପୋସରେ ସବୁ ମିଳାମିଶା କରିବାକୁ ଚାହୁଁଥିଲେ ।
ଛା—ଇଂରେଜମାନେ କଣ ସେଥିରେ ରାଜି ହୋଇଗଲେ ?
ଶି—ନା, ସେଥିପାଇଁ ଗାନ୍ଧି କେତେ ଚେଷ୍ଟା କରିଛନ୍ତି । କେତେଥର ଜେଲ୍ ଯାଇଛନ୍ତି । ଲୋକ ଉପାସରେ ପଡ଼ି ନାନା

କଷ୍ଟ ପାଇଛନ୍ତି । ଶେଷରେ ତାଙ୍କ ଉଦ୍ଦେଶ୍ୟ ସଫଳ ହେଲା । ଆଜ ଆମେ ସେହି ମହାତ୍ମାଙ୍କ ଯୋଗୁଁ ସ୍ୱାଧୀନ । ନିଜେ ସୂତା କାଟି ଲୁଗା ବୁଣିବାପାଇଁ ଗାନ୍ଧିଜୀ ଲୋକମାନଙ୍କୁ ବରାବର ଉପଦେଶ ଦେଉଥିଲେ । ସେ ସାନ ଓ ବଡ଼, ଛୁଆଁ ଓ ଅଛୁଆଁ, ହିନ୍ଦୁ ଓ ମୁସଲମାନ ସମସ୍ତଙ୍କୁ ସମାନ ଦେଖୁଥିଲେ । ଗାନ୍ଧି ଆମ ଜାତିର ପିତା ସଦୃଶ । ତେଣୁ ସମସ୍ତେ ତାଙ୍କୁ ବାପୁଜୀ ବୋଲି କହନ୍ତି । ବାପୁଜୀ ଆଜି ନାହାନ୍ତି, କିନ୍ତୁ ତାଙ୍କ ନାଁ କାଳକାଳକୁ ରହିଥିବ ।

## ପ୍ରଶ୍ନ

୧ । ମହାତ୍ମା କିଏ ? ଗାନ୍ଧି ଆମ ଦେଶପାଇଁ କଣ କରିଛନ୍ତି ? ତାଙ୍କର ପିଲାଦିନର ନାଁ କଣ ?

୨ । ପଢ଼ ଓ ଲେଖ :— ଗାନ୍ଧିଙ୍କ ପନ୍ଥା ଅତି ଉତ୍ତମ । ସେହି ପନ୍ଥା ମାନି ଚଳିଲେ ସମସ୍ତ କାର୍ଯ୍ୟ ଅକ୍ଲେଶରେ ହୋଇ ପାରିବ । ସମସ୍ତେ ଏକସ୍ୱରରେ ସ୍ୱାଧୀନ ଭାରତର ଜୟଗାନ କର ।

---

## ମୁଁ କିଏ କହ

ଆଖିରେ ତ ମୋତେ ଦେଖିନାହିଁ କେହି
ନ ଜାଣଇ ରୂପ ମୋର,
ମୋ ଧନା ବଣ୍ଡିକେ ଦୁନିଆଁଟା ସରି
ହୋଇଯିବ ହରବର ।

କେବେ ମୁହିଁ ଧୀର	କେବେ ମୁହିଁ ଖର
କେବେ ଅବା ଭୟଙ୍କର,
ପ୍ରଚଣ୍ଡ ମୂରତି	ଧରି କେବେ ପୁଣି
ଭାଙ୍ଗେ କେତେ ଘରଦ୍ୱାର ।
କାକର, କୁହୁଡ଼ି	ମେଘ ଅବା ଝଡ଼
ସକଳ ମୋହର କାମ,
ତୁମରି ନିଶ୍ୱାସେ	ଚଳୁ ଛି ଯେ ସଦା
ମୋ ଠାରୁ ସେ ନୁହେଁ ଆନ ।
ସମସ୍ତଙ୍କୁ ଛୁଇଁ	ପଳାଇ ଯାଏ ମୁଁ
ନ ପାରେ ମୋତେ କେ ଧରି,
ମୋ ନାମ କହ କେ	ବାଳକ ବାଳିକା
ଦଣ୍ଡେ ମନ ସ୍ଥିର କରି ।

## ପ୍ରଶ୍ନ

୧ । ଏ ପଦ୍ୟରେ କିଏ କାହା କଥା କହୁଛି ?

୨ । (କ) ମୋ ଦେହରେ ତିନୋଟି ରଙ୍ଗ ଅଛି । ମଝିରେ ଗୋଟିଏ ଚକ ଚିହ୍ନ । ମୋତେ ଦେଶର ଧନ୍ୟ ଗୌରବ, ରଜା ପ୍ରଜା ସମସ୍ତେ ସମ୍ମାନ କରନ୍ତି । ମୋ ତଳେ ସାନ ବଡ଼ କି ଛୁଆଁ ଅଛୁଆଁ କିଛି ପ୍ରଭେଦ ନାହିଁ । ମୁଁ କିଏ କହିଲ ?

(ଖ) ମୁଁ ପୂର୍ବ ଦିଗରେ ଉଏଁ ଓ ପଶ୍ଚିମ ଦିଗରେ ଅସ୍ତ ଯାଏ । ମୋ ବିନା ପୃଥିବୀରେ ପଶୁପକ୍ଷୀ, କୀଟ ପତଙ୍ଗ ଓ ବୃକ୍ଷଲତା କେହି ବଞ୍ଚି ପାରିବେ ନାହିଁ । ମୁଁ ନ ଥିଲେ ଦୁନିଆଁଟା ଅନ୍ଧାର । ମୁଁ କିଏ କହିଲ ?

---

# ଅଗ୍ନି ଦେବତା

ଆଜ ଦିନ ତୁମେ ଏତେ ସହର ବଜାର, କୋଠା ବାଡ଼ି ଓ ଘରଦ୍ୱାର ଦେଖୁଛ । କିନ୍ତୁ ବହୁ ପୂର୍ବକାଳରେ ଏ ସବୁ କିଛି ନ ଥିଲା । ଚାରିଆଡେ ଖାଲି ବଣ ଓ ଜଙ୍ଗଲ । ମନୁଷ୍ୟମାନେ ବାଘ ଭାଲୁ ପରି ବଣରେ ରହୁଥିଲେ । ସେମାନେ ଲୁଗା ପଟା ପିନ୍ଧି ଜାଣି ନ ଥିଲେ, ଗଛର ବକ୍କଳ ପିନ୍ଧୁଥିଲେ । ବନ୍ୟଜନ୍ତୁମାନଙ୍କ ପରି କଞ୍ଚା ଫଳମୂଳ ଓ ମାଂସ ଖାଉଥିଲେ ।



ମଣିଷ ତ ଭାରି ବୁଦ୍ଧିଆ । ବାଘ ଭାଲୁଙ୍କ ମୁହଁରୁ କିପରି ସେ ବଞ୍ଚିବ ସେଥିପାଇଁ ଗୋଟାଏ ଉପାୟ ପାଇଲା । ଦୁଇଖଣ୍ଡ କାଠକୁ ଘଷି ସେଥିରୁ ସେ ନିଆଁ ବାହାର କଲା । ନିଆଁକୁ ବନ୍ୟ ଜନ୍ତୁଙ୍କର ଭାରି ଡର । ସେମାନେ ନିଆଁ ଦେଖି ମଣିଷଠାରୁ ଦୂରରେ ରହିଲେ । କ୍ରମେ ଏହି ନିଆଁ ସାହାଯ୍ୟରେ ମନୁଷ୍ୟ ଖାଦ୍ୟ ରନ୍ଧନ ରାନ୍ଧି ଶିଖିଲା ।

ସେ କାଳ ଆଉ ନାହିଁ । ମନୁଷ୍ୟ ଆଜି ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଶ୍ରେଷ୍ଠ । ସେ ରେଳ, ମଟର, ଉଡ଼ାଜାହାଜ, ବୁଡ଼ାଜାହାଜ; ସିନେମା, ବିଜୁଳିବତି ପ୍ରଭୃତି କେତେ କେତେ ନୂଆ ଜିନିଷ ବାହାର କଲଣି । କିନ୍ତୁ ପ୍ରଥମେ ସେ ସୃଷ୍ଟି କରିଥିଲା ନିଆଁ । ଥରେ ନିଆଁ ବାହାରିଲେ ସେ ଶୁଖିଲା ପତର ଓ କାଠ ଦେଇ ତାକୁ ବହୁତ ଦିନ ଜଳାଇ ରଖୁଥିଲା । ଆଜିକାଲି ସେ ଅସୁବିଧା ଆଉ ନାହିଁ । ତିନି ଚାରି ପଇସାର ଦିଆସିଲିଟିଏ ଆଣି ରଖିଲେ ଯେତେବେଳେ ଚାହିଁବ ସେତେବେଳେ ନିଆଁ ବାହାର କରି ପାରିବ ।

ନିଆଁ ଆମର ବଡ଼ ଦରକାରୀ ଜିନିଷ । ତେଣୁ ନିଆଁକୁ ଅଗ୍ନି ଦେବତା ବୋଲି ସମସ୍ତେ ମାନନ୍ତି ଓ ପୂଜା କରନ୍ତି ।

## ପ୍ରଶ୍ନ

୧ । ମନୁଷ୍ୟ ପ୍ରଥମେ କଣ ସୃଷ୍ଟି କଲା ? ଆଜିକାଲି ମଣିଷ ଆଉ କି କି ଜିନିଷ ବାହାର କଲଣି ? ନିଆଁକୁ ଅଗ୍ନି ଦେବତା ବୋଲି କାହିଁକି କହନ୍ତି ?

୨ । ପଢ଼ ଓ ଲେଖ :—ଗୁଳ୍ମ, ଶୁକ୍ଳ, ସଂକଳ୍ପ, ଅମ୍ଳ, [illegible], ଗୋଷ୍ଠ, ଓଷ୍ଠ ।

---

# ମଧୁ ବାରିଷ୍ଟର

ସତ୍ୟଭାମାପୁର କଟକ ଜିଲ୍ଲାର ଗୋଟିଏ ଗାଁ । ମଧୁ ପିଲାଦିନେ ସେହି ଗାଁ ସ୍କୁଲରେ ପାଠ ପଢ଼ୁଥାଏ ।

ଦିନକର ଘଟଣା । ବର୍ଷା ଦିନ ହୋଇଥାଏ । ସେ ସ୍କୁଲକୁ ଆସୁ ଆସୁ ଗୋଟିଏ ଖାଲରେ ପଡ଼ିଗଲା । ତାହାର ଲୁଗା-ପଟା ଓ ବହିପତ୍ର ଓଦା ହୋଇଗଲା । ସେ ସ୍କୁଲକୁ ଆସି ଶିକ୍ଷକଙ୍କୁ କହିଲା, "ମହାଶୟ, ମୁଁ ଆସୁ ଆସୁ ଗୋଟିଏ ଖାଲରେ ପଡ଼ି ଓଦା ହୋଇଗଲି । ଆଜି ମୁଁ ପଡ଼ିଲି, କାଲି ହୁଏତ ଆଉ କିଏ ପଡ଼ିପାରେ । ସେଠାରେ ଯଦି ଗୋଟିଏ ବନ୍ଧ ହୁଅନ୍ତା, ଆମର ଯିବା ଆସିବାରେ ବଡ଼ ସୁବିଧା ହୁଅନ୍ତା ।"

ଶିକ୍ଷକ କହିଲେ, "ହଁ ତାହା ଠିକ୍ କଥା । ମୁଁ ଏ ବିଷୟରେ କେତେ ଥର ସମ୍ପାଦକ ଓ ଗ୍ରାମବାସୀମାନଙ୍କୁ କହିଲଣି । କିନ୍ତୁ ମୋ କଥା ଶୁଣୁଛି କିଏ ? ସମସ୍ତେ ମିଳି ମିଶି ଯିବା ଏ କାମ କଲେ ହେବ ।"

ମଧୁ ଏ କଥା ଶୁଣି ଆଉ କିଛି କହିଲା ନାହିଁ । ମନ କଥା ମନରେ ଥାଏ । ପୂଜାଛୁଟିରେ ପନ୍ଦର ଦିନ ସ୍କୁଲ ବନ୍ଦ ରହିଲା । ସେହି ସମୟରେ ମଧୁ ଗାଁ ପିଲାମାନଙ୍କୁ ଏକାଠି କଲା । ସମସ୍ତଙ୍କୁ ଏ ବନ୍ଧଟି ବାନ୍ଧିବା କଥା କହିଲା । ତା କଥାରେ ପିଲାଏ ଅଣ୍ଟାଭିଡ଼ି ବାହାରି ପଡ଼ିଲେ । ସମସ୍ତେ ନିଜ ହାତରେ ମାଟି ଖୋଳି ସେହି ଖାଲରେ ଗୋଟିଏ ବନ୍ଧ ପକାଇ ଦେଲେ ।

ଛୁଟି ପରେ ଶିକ୍ଷକ ଘରୁ ଫେରି ଦେଖିଲେ ଯେ ଗୋଟିଏ ମସ୍ତ ବଡ଼ ବନ୍ଧ ହୋଇଛି । ପଚାରି ବୁଝିଲେ ଯେ, ମଧୁ ତା ସାଙ୍ଗ ପିଲାଙ୍କୁ ଏକାଠି କରି ସେ କାମ କରିଛି ।

ଏହା ଶୁଣି ଶିକ୍ଷକ ଅତି ଆନନ୍ଦିତ ହୋଇ ମଧୁକୁ କହିଲେ,



"ବାପ, ତୁ ଦିନେ ଖୁବ୍ ବଡ଼ ଲୋକ ହେବୁ । ଈଶ୍ୱର ତୋତେ ଆୟୁଷ ଦିଅନ୍ତୁ । ତୁ ଆଜି ସାଙ୍ଗ ଜଣଙ୍କୁ ନେଇ ଯେଉଁ କାମଟିଏ କରି ପାରିଛୁ ସେଥିପାଇଁ ତୋତେ ଧନ୍ୟବାଦ୍ । ତୋର ଏହି ଗୁଣ ସବୁଦିନେ ରହିଥାଉ ।"

ମଧୁ ସତକୁ ସତ ବଡ଼ ହୋଇ ବହୁତ ପାଠ ପଢ଼ିଲା । ବିଲାତ ଗଲା । ଶେଷକୁ ସେ ଜଣେ ବିଖ୍ୟାତ ବାରିଷ୍ଟର ହେଲା । ଦେଶ ପାଇଁ ସେ ଅନେକ ଭଲ କାମ କଲା । ଏହି ମଧୁ ଦିନେ ଦେଶ ବିଦେଶରେ ମଧୁବାବୁ ନାମରେ ପରିଚିତ ହୋଇଥିଲା । ଆଜିକି ଅଠର ବର୍ଷ ହେବ ମଧୁ ବାବୁଙ୍କର ମୃତ୍ୟୁ ଘଟିଲାଣି । ତଥାପି ଦେଶରେ ସମସ୍ତେ ଆଜି ପର୍ଯ୍ୟନ୍ତ ତାଙ୍କୁ ସ୍ମରଣ କରନ୍ତି ।

## ପ୍ରଶ୍ନ

୧ । ମଧୁକୁ ଶିକ୍ଷକ କାହିଁକି ପ୍ରଶଂସା କଲେ ? ମଧୁବାବୁଙ୍କୁ କାହିଁକି ଲୋକେ ଆଜି ପର୍ଯ୍ୟନ୍ତ ମନେ ରଖିଛନ୍ତି ?

୨ । ପଢ଼ ଓ ଲେଖ :—କୌଣସି କାମ ଏକୁଟିଆ କରିବା କଷ୍ଟକର । ପାଞ୍ଚ ସାତ ଜଣ ଏକାଠି ମିଶିଲେ ତାହା ଅକ୍ଲେଶରେ ହୋଇପାରେ । ମଧୁବାବୁ ସମସ୍ତଙ୍କୁ ଏକାଠି କରି ବହୁତ ବଡ଼ ବଡ଼ କାମ କରିପାରିଥିଲେ । ତୁମ୍ଭେମାନେ ଇଚ୍ଛା କଲେ ମିଳିମିଶି ଦେଶର ବହୁତ ବଡ଼ ବଡ଼ କାର୍ଯ୍ୟ କରି ପାରିବ ।

---

## ଧନ୍ୟ ସେହି କାରିଗର

କିଏ ଗଢ଼ିଲା ଏ ନେଳିଆ ଆକାଶ
ପାହାଡ଼ ଦରିଆ ନଈ ?
କିଏ ଗଢ଼ିଲା ମୋ ଟିକି ଦେହ ଗୋଟି
ସବୁଜ ସୁନ୍ଦର ଭୂଇଁ ?

ପରଜାପତିଙ୍କ ରଙ୍ଗଢଙ୍ଗ କଲା
କାଉ କିଏ କଲା କଳା ?
ହଳଦୀବସନ୍ତ ହଳଦିଆ ଡେଣା
କୋଇଲିର ସରୁ ଗଳା ?

ପତରେ ଦେଲା କେ ସବୁଜ ବରଣ
ପଡ଼ିଆରେ ଦୁବ ଘାସ ?
ଫୁଲରେ କେ ଦେଲା ମହକ ଛୁଟାଇ
ଶିଶୁ ମୁଖେ ଦେଲା ହାସ ?

ଦିନ ପରେ ରାତି ରାତି ପରେ ଦିନ
ଆସଇ କା କଥା ମାନି ?

ବଇଶାଖେ ଝାଞ୍ଜି　　　　　　ମାଘ ମାସେ ଜାଡ଼
ଶିରବଣେ ଧାର ପାଣି ?
ସକାଳେ ସରୁଯ　　　　　　ଉଇଁ ଆସେ ଛଅ
ରାତରେ ସୁନ୍ଦର ଶଶୀ ?
ସଞ୍ଜବେଳ ହେଲେ　　　　　　ପୁଞ୍ଜା ପୁଞ୍ଜା ତାର
କପାଳିଁ ଉଠନ୍ତ ହସି ?
ଏଡ଼େ କଉଶଳେ　　　　　　ଗଢ଼ିଲ ଯେ ସବୁ
ଧନ୍ୟ ସେହୁ କାରିଗର !
ଧନ୍ୟ ତାର ବୁଦ୍ଧି　　　　　　ତା ପାଦେ ମୋହର
କୋଟି କୋଟି ନମସ୍କାର ।

## ପ୍ରଶ୍ନ

୧ । କାରିଗର କାହାକୁ କହନ୍ତି ? ଏ ସଂସାରର କାରିଗର କିଏ ?

୨ । ଲେଖ:—ମେଲେରିଆ ଜ୍ୱରରେ ପ୍ରଥମେ କମ୍ପ ହୁଏ । ପକ୍ଷୀମାନଙ୍କର ଲଞ୍ଜ ନାହିଁ । ପରିଷ୍କାର ରହିଲେ କାହୁ କୁଣ୍ଡିଆ ହୁଏ ନାହିଁ । ଶଙ୍କର ଜଣେ ସିଦ୍ଧ ପୁରୁଷ ।

---

Printed by K. Kar, U. S. Press, Cuttack—1952

